# ଚିକିମିକି ସକାଳ



ଦାଶ ବେନହୁର



ଚିକିମିକି ସକାଳ
(ଶିଶୁଗୀତ ସଂକଳନ)

ଲେଖକ :
*ଦାଶ ବେନହୁର*

ସ୍ୱତ୍ୱ :
**ଜୟତନ୍ଦ୍ରା ଦାଶ**

ପ୍ରଥମ ପ୍ରକାଶ :
**ଅଗଷ୍ଟ ୧୫, ୨୦୦୩**

ଅଳଙ୍କରଣ :
**ବଳଦେବ ମହାରଥୀ**

ପ୍ରକାଶକ :
**ଝୁମୁକା ପ୍ରକାଶନ**
୧୪୪-ଗଭର୍ଣ୍ଣମେଣ୍ଟ ଆଇ.ଟି.
ଚାରବାଟିଆ, କଟକ-୭୫୪୦୨୮

ଲିପି ସଂଯୋଜନା :
**ସତ୍ୟଲିପି**
ଚୌଦ୍ୱାର, କଟକ

ମୁଦ୍ରଣ :

**ନିର୍ଭିକ ପ୍ରିଣ୍ଟରସ (ପ୍ରା) ଲିଃ.**
ଭୁବନେଶ୍ୱର
ଫୋନ-୨୫୮୭୮୫

ମୂଲ୍ୟ :
ଟ. ୨୫/- (ପଚିଶ ଟଙ୍କା ମାତ୍ର)

**CHIKIMIKI SAKALA**
(Poems for children)

By . **DASH BENHUR**

@ : Jayatandra Dash

First Edition :
**August 15, 2003**

Illustration :
**Baladev Moharatha**

Publisher :
**JHUMUKA Prakashan**
144, Govt. Ind.Tenement
Charbatia, Cuttack-754028

DTP :
**SATYALIPI**
Choudwar, Cuttack

Printer :

**Nirvik Printers (P) Ltd.,**
Bhubaneswar, Ph-2587852
Price :
**Rs. 25/-**
**(Rupees Twenty Five only)**

## କଥା ପଦେ :

ବାଜା ଓ ରଂଗ ସବୁପିଲାଙ୍କୁ ଭଲ ଲାଗେ । ଅତି ଛୋଟବେଳୁ ସେମାନେ ବାଜା ଓ ରଂଗ ଆଡ଼କୁ ଟାଣି ହୁଅନ୍ତି । ଟିକିଏ ବଡ଼ ହୋଇଗଲେ ଗପ ଶୁଣିବାକୁ ଓ ଗୀତ ଗାଇବାକୁ ସେମାନଙ୍କ ଭିତରେ ଆଗ୍ରହ ବଢ଼େ । ନିଜ ଚାରିପଟରେ ଥିବା ଜିନିଷ ଓ ନିଜ ଅନୁଭବରେ ଆସୁଥିବା ବିଷୟର ଗୀତମାନ ତାଳଦେଇ ଗାଇବାକୁ ସେମାନେ ଖୁବ୍ ପସନ୍ଦ କରନ୍ତି । ସେଭଳି ଗୀତ ଗଡ଼ିକରେ ଶବ୍ଦର ଅର୍ଥ ଅପେକ୍ଷା ତାଳ ଓ ଛନ୍ଦର ଆବଶ୍ୟକତା ବେଶି । ସେଥିପାଇଁ ଅର୍ଥ ନ ଥିବା କେବଳ ଛନ୍ଦରେ ବନ୍ଧା ଗୀତ ବି ସେମାନେ ଗାଇବାକୁ ଭଲପାଆନ୍ତି । ବିଶେଷ କରି ତିନି ବର୍ଷରୁ ଆଠ ବର୍ଷର ପିଲାମାନେ ତାଳ ଓ ଛନ୍ଦର ଗୀତକୁ ପସନ୍ଦ କରନ୍ତି । ତା ସହିତ ଭାବକୁ କୋମଳ ଓ ସୁନ୍ଦର କରି ଗୀତରେ ଦେଲେ, ହେତୁ ପାଇଥିବା ପାଞ୍ଚ ଛଅ ବର୍ଷର ପିଲା ବି ସେଗୁଡ଼ିକୁ ଆଦର ସହକାରେ ପଢ଼ି ଆନନ୍ଦ ପାଏ ।

ଏ ଛୋଟ ବହିଟିରେ ମାତ୍ର କୋଡ଼ିଏଟି ଶିଶୁଗୀତ ଅଛି । ଭାବ ଓ ଛନ୍ଦକୁ ଫେଣ୍ଟାଫେଣ୍ଟି କରି ସେଗୁଡ଼ିକୁ ଶିଶୁ ଓ କିଶୋର ମନଲାଖି କରିବା ପାଇଁ ଚେଷ୍ଟା କରାଯାଇଛି ।

ମୋର ଆଶା ବଡ଼ମାନେ ଏ ଗୀତଗୁଡ଼ିକୁ ପିଲାଙ୍କ ଆଗରେ ପଢ଼ି ଶୁଣାଇଲେ ସେମାନେ ଆପେ ସେସବୁ ପଢ଼ିବାକୁ ଭଲ ପାଇବେ । କୋଡ଼ିଏରୁ ଗୋଟିଏ ମାତ୍ର ଗୀତ ପିଲାର ମନଛୁଆଁ ହେଲେ ସେତିକି ଏ ଲେଖକ ପାଇଁ ବଡ଼ କଥା ।



ଦାଶ ବେନହୁର

## ଏଥିରେ ଅଛି :







# ଚିକିମିକି ସକାଳ



ଚିକିମିକି ସକାଳ,
ଆଇଁସୁଡୁକା ପଖାଳ,
ମକରା ମାଗେ ମୁଢ଼ି ;
ରହମ ଟିକେ
        ଓଳାଏ ଘର
କହଇ ସାନ ଖୁଡୀ ।।୧।।



ଦୁମୁଦୁମୁ ବରଷା,
ପୁଚୁପୁଚିଆ ଆରିଷା,
ହୁଡୁମ ମାଗେ ଲୋକା ,
କାଉଳା କିଆଁ
        ହଉଚୁ କହ
ହାଉଳେ ମଧୁ କକା ।।୨।।



ଚାପାଚାପା କାକର,
ପାଣିପାଣିଆ ସାକର,
ଧଡ଼ିଆ ମାଗେ ଡାଲି;
ଧାଇଁଛି ବୋଉ
ଉଡୁରେ କ୍ଷୀର
ଗଲାଣି ନିଭି ଚୁଲି ।।୩।।

ଥଲଥଲ କାଦୁଅ,
ଚାଉଁଚାଉଁଆ ଭୋଦୁଅ,
ଚଗଲା ମାଗେ ଗଜା;
ହେଇଟି ଆସି
ପାଇଗଲେଣି
ଗୁଡ଼ିଆ ଘର ଅଜା ।।୪।।



ଧୋଓଧୋଓ ବାଇଆ,
ମେଘ ଅନ୍ଧାର ଛାଇଆ,
ଆଚାର ମାଗେ ମାନୀ;
କହିଲେ ଯେତେ
ନେହୁରା ହେଇ
ନଶୁଣେ ବଡ ନାନୀ ।।୫।।



ନ ଶୁଣିଲେ ନାଇଁ;
ଖେଳିବା ବେଳ
ହେଲାଣି ଏବେ
ଯାଉଛି ମୁହିଁ ଧାଇଁ ।।୦।।

# ହେଇଟି ଟାଉନ୍ ବସ୍



ଆସ ମ ଆସ
ଜଲ୍‌ଦି ଆସ
ଟାଉନ୍ନୁ ବସ୍ ହେଇ,
ଉଛୁର ହେଲେ
ପଳେଇ ଯିବ
ଆଉ ମିଳିବ ନାହିଁ ।।୧।।

ଆଗରେ ବସ
ପଛରେ ବସ
ଯହିଁ ବସୁଛ ବସ,
ଦୁଆର ମୁହେଁ
ନକର ଭିଡ଼
ପଛକୁ ବେଗେ ଖସ ।।୨।।

କ୍ଲିନର୍ ଭାଇ
ଡକା ପକାଇ
ଛକରେ ଛାଡ଼େ ରଡ଼ି,
ଆଗରେ ଫାଙ୍କା
ପଛରେ ଫାଙ୍କା
ଏଇ ଛାଡ଼ିଲା ଗାଡି ।।୩।।

ଗାଡ଼ିଟା ସାରା
ଲୋକରେ ଭରା
ପାଦ ରଖିବା ପାଇଁ,
ଟିକିଏ କାହିଁ
ନାହିଁରେ ଥାନ
ଅଫିସ୍ ବେଳ ଭାଇ ।।୪।।



ପଇସା ଦିଅ
ଟିକଟ ନିଅ
ସବୁର୍ କର ଭାଇ,
କେତେ ଘଡ଼ିବା
ବସିବ କିଏ
ବାଟ ଓଗାଳ ନାଇଁ ।।୫।।



ଚାଲଇ ଗାଡ଼ି
ଆଗକୁ ମାଡ଼ି
ରହି ଥରକୁଥର,
ଚଢ଼ା ଉତରା
ଲାଗିଛି ପାଳା
ସଭିଏଁ ତରତର ।।୬।।

ଆସରେ ଆସ
ଜଲ୍‌ଦି ଆସ....

# ଶୁଣ ଭାଇ ଭଉଣୀ

ଶୁଣ ଭାଇ ଭଉଣୀ,
ଗଛ ଲତା କାହାଣୀ;
ବଣ ଯହିଁ ନାହିଁ ତହିଁ,
ମରୁଭୂମି ଧରଣୀ ।।୧।।



ଗଛ ଯେବେ କଟିବ,
ଛାଇ ତେବେ ହଟିବ;
ମାଟି ହେବ ଠାଉ ଠାଉ,
ବାଲି ସେଠି ରଟିବ ।।୨।।

ଗଛ ଚେର ମାଟିରେ,
ଜଳ ଟାଣେ ପାଟିରେ;
ପତରରୁ ପାଣି ଯାଏ,
ଆକାଶରେ ଘୋଟିରେ ।।୩।।

ମେଘ ଖେଳେ ହରଷେ,
ପବନର ପରଶେ;
ଭାରୀ ହେଲେ ଦେହ ତାର,
ପାଣି ହୋଇ ବରଷେ ।।୪।।



ପାଣି ଯେବେ ଖସିବ,
ଭୂଇଁ ଦେହେ ପଶିବ;
ମାଟି ପାଣି ଶୋଷ ଦେହେ,
ଗଛଲତା ହସିବ ।।୫।।

ଗଛ ଯହିଁ ନାଇଁଟି,
ଫାଟିଯାଏ ଭୂଇଁଟି;
ସବୁଆଡ ହାହାକାର,
ପାଣିଟୋପେ ପାଇଁଟି ।।୬।।



ଆମେ ମିଳି ମାତିଲେ,
ଗଛଲତା ପୋତିଲେ;
ମରୁଭୂମି ହଟିଯିବ,
ହାତଟିକେ ପାତିଲେ ।।୦।।

# କୋଇଲି ଫୁଙ୍କେ ବାଜା

ବରଷା ଝରେ ଟପର ଟପ
ପତର ପଡେ ଖଡ୍;
ରାତି ଅନ୍ଧାର ଆସିଲା କିଏ
ଛାତିଟା ପଡେ ଧଡ୍ ।।୧।।

ବିଜୁଳି ମାରେ ଚିଇକି ମିକ୍
ଗରଜେ ଘଡଘଡି;
ଡରୁଆ କୁନା ଅତରଛିଆ
ଶୁଅଇ ମୁହଁ ମାଡ଼ି ।।୨।।



ଆଲୁଅ ଆସେ ଫରଫରିଆ
ଥିଇରି ପଡ଼େ ଖରା;
ପବନ ବହେ ଫଲଫଲିଆ
ଫିଇକି ହସେ ଧରା ।।୩।।

କାକର ପଡ଼େ ଟୁଡପୁଟାପ୍
ଖସଇ ଶୀତ ଥୁପ୍;
ଭଉଁରି ପରି ଘୂରଇ ଜାଡ଼
ଶୁଅଇ ରାତି ଚୁପ୍ ।।୪।।



କୁଆ ପଥର ଦୁଉଲୁଦାଲ୍
ବରକୋଳିଆ ଟୋପା;
ଅମାରେ ପଶେ ଉଫୁଲା ପାଣି
ବିରିରୁ ଛାଡେ ଚୋପା ।।୫।।



କିଏ ସେ କୁଆଁ ପତରେ ଆସେ
ଋତୁ ଯାକରେ ରାଜା;
ବାଇଦ, ଢ଼ୋଲ, ମହୁରୀ ନାଇଁ
କୋଇଲି ଫୁଙ୍କେ ବାଜା ।।୬।।

ଇସ୍କୁଲ ଘଣ୍ଟା ଠଅନ୍‌ଠାନ୍
କବାଟ ଫିଟେ କେଏଁ;
ଆଗରେ ଯାଇ ବସିବା ପାଇଁ
ଚକରା କାନ୍ଦେ ଭେଏଁ ।।୦।।

# ଇସ୍କୁଲ ଗୁଡ଼ା ଗଛ ପତର



ବହି ଫିଟିଲେ
ବାସନା ଛୁଟେ
ନୂଆ ବହିରୁ ସତେ,
ଭିନେ ପାଠର
ବାସନା ଭିନେ
ବଢ଼ିଆ ଲାଗେ ମତେ ॥୧॥

ଗପ ଲାଗଇ
କୋଳି ପରିକା
ଗୀତ ଗୁଡାକ ଫୁଲ,
ଗଣିତ ପାଠ
ନଡ଼ିଆ ପରି
ଭିତରେ ରସ ଠୁଳ ॥୨॥



ବିଜ୍ଞାନ ବହି
କଣ୍ଟକଣ୍ଟିଆ
ଦିଶଇ ଡହଡହ,
ଥିରି ମନରେ
ଭାବିଲେ ବସି
ଆଉଁସି ହୁଏ ଦିହ ॥୩॥

ଇତିହାସଟା
ଧାନ କିଆରି
ଭୂଗୋଳ ଆଖୁ କ୍ଷେତ,
ଚାଷର ବାଗ
ଜାଣିଛି ଯିଏ
ଉଡ଼ଇ ତାର ନେତ ।।୪।।



ନୁହଁଇ କାଠ
ସମାଜ ପାଠ
ସୁଆଦ ଫଳ ସିଏ,
ଖାଇବ ଯେତେ
ବାସିବ ସେତେ
ବଡ଼ରୁ ସାନ ଯାଏଁ ।।୫।।

ଜାଣେ ମୁଁ ଜାଣେ
ଦୁନିଆ ବଣେ
ପାଠ ଅସଲ ଫଳ,
ଇସ୍କୁଲ ଗୁଡ଼ା
ଗଛ ପତର
ସହର ଗାଆଁ ମୂଳ ।।୬।।

ଆସରେ ଭାଇ
ବୁଲିବା ଯାଇ
ପାଠ ବଣରେ ମାତି,
ତୋଳିବା ଗପ
ତୋଳିବା ଗୀତ
ଗଣିତ ଜାତିଜାତି ।।୦।।

# ହାଟକୁ କୋଶେ ବାଟ

ହୋଓ ହୋଓ ହାଟ,
ହାଟକୁ କୋଶେ ବାଟ,
ବାଟରେ ଠିଆ ନଈ,
ନଈଟା ସାରା ଘାଇ;
ଦଉଡ଼ି ଆରେ ଗଉଡ଼ ଭାଇ,
ଧାନ ଖାଇଗଲା ଗାଈ ॥୧॥





କୋଓ କୋଓ କାଉ,
କାଉକୁ ଫାଉ ନଉ,
କାଉର ଘର ପୁରୀ,
ଖାଉଚି ମିଠା ଖିରି;
ପଳେଇ ଯାରେ ଚଢ଼େଇ ପିଲା,
ହେଇ ଆସିଲାଣି ଛୁରୀ ॥୨॥

ଘୋଓ ଘୋଓ ଘର,
ଘରକୁ ବାତ ଜର,
ଜରରେ ଥରେ କୂଅ,
ପାଚନ ପଥି ଥୁଅ;
ଛପରି ଦେରେ ପଧାନ ପୁଅ,
ମେଲା ଦିଶିଲାଣି ରୁଅ ।।୩।।



ଧୋଓ ଧୋଓ ଧାନ,
ଧାନକୁ କାଇଁ ଥାନ,
ଦୁଆର ଘର ମୂଷା,
ଏଇଠି ସେଠି ବସା;
ଆସିବ ଏଇ ବିଲେଇ ନାନୀ,
ଦବ ଉଡେଇରେ ହଂସା ।।୪।।



ରୋଓ ରୋଓ ରାତି,
ରାତିରେ ବୁଲେ ହାତୀ,
ହାତୀ କରୁଚି ନାଟ,
କାହୁଅ ପାଣି ଘାଟ;
ହେଇ ଆଇଲାରେ ମାହୁନ୍ତ ପୁଅ,
ହାତୀ ପାଇବନି ବାଟ ।।୦।।

# କୁଡୁମୁଡ଼ିଆ



କୁଡୁମୁଡ଼ିଆ,
ମୁଢ଼ି ନଡ଼ିଆ,
ଭାରୀ ଭଢ଼ିଆ;
ପାକୁଆ ପାଟିକୁ
ବଡ଼ ଅଡୁଆ ॥୧॥

ଥଲରଥଲ,
କଷି ଆମ୍ବୁଲ,
ବାସନା ଭଲ;
ଦେଖିଲେ ଜିଭଟା
ଖଲରଖଲ ॥୨॥

ମୁସୁରୁମଣା,
ବାଟୁଳା ଚଣା,
ପିଲାଏ ବଣା;
ଚଣାର ମଉସା
ଚାଚେରୀପଣା ॥୩॥

ହିକୁରୁହିଙ୍କା,
ଜହରୀ ଲଙ୍କା,
ଭିତରେ ଫାଙ୍କା;
ଜିଭରେ ବାଜିଲେ
ଉଠିଲା ହିକ୍କା ॥୪॥

ନାଉଲିନୋଳି,
କଣ୍ଟେଇ କୋଳି,
ଆଣରେ ତୋଳି;
ନଖାଇ ପାରିଲେ
ମନଟା ଗୋଳି ॥୦॥

# ମଣିଷ ଖାଏ ବାଘ

ମିରିଗ ଖାଏ ଘାସ ପତର
ଠେକୁଆ ଖାଏ ଶାଗ;
ଛାଣିଚ କିଏ ଅଭିଲା କଥା
ମଣିଷ ଖାଏ ବାଘ ।।୧।।



ବାଘର ଗାଆଁ ଘୋର ବଣରେ
ଜଙ୍ଗଲ ତାର ଘର;
ପାହାଡ଼ ନଇ ଦିଖେପା କରେ
କାହାକୁ ନାଇଁ ଡର ।।୨।।

ବଣ ରାଇଜେ ବୋଲାଏ ରାଜା
ଖାଏ ସେ ମାରି ପଶୁ;
ଗରଜି ଦେଲେ ପିଳେହି ପାଣି,
ବଳୁଆ ଯେଡ଼େ ଆସୁ ।।୩।।

ଗଛ ଉହାଡ଼େ ଅଝାଡ଼ ଝାଡ଼େ
ବାଘର ପଲ ବଡ଼େ;
ଯେଉଁଠି ନାଇଁ ଗଛ ବୁରୁଛ
ସେଇଠି ସବୁ ଛିଡ଼େ ।।୪।।



ଆସିଲା ଏବେ ଅକାଳ କାଳ
ଚାଲିଲା ଗଛ କଟା;
ପଡିଆ ହେଲା ବଣ ମୁଲକ
ଉଭେଇ ଗଲା ଲଟା ।।୫।।

ମଣିଷ ଜାତି ଧଇଲା କାତି
ହାଣିଲା ବନଭୂଇଁ;
ଭାଙ୍ଗିଲା ସିଏ ବାଘର ଘର
ରହିବ ବାଘ କାହିଁ ।।୬।।

ବାଘ ମାରଇ ମଣିଷ ବୋଲି
ଶୁଣିଛେ ଆମେ ଆଗ;
ଏଇଲେ ବଣ ଉଜାଡ଼ି ଦେଇ
ମଣିଷ ଖାଏ ବାଘ ।।୦।।

# ଆମେ ଉଠିବା ମାତି

ଫୁଲ ଫୁଟିଲେ
ବଗିଚା ଫିଟେ
ବାସନା ଯାଏ ଖେଳି,
ଗଛର ଗୁଣ
ବଖାଣେ ଫୁଲ
ଭଅଁର କରେ ମେଳି ।।୧।।

ତାରା ଫୁଟିଲେ
ଅନ୍ଧାର ଫିଟେ
ଜୁଳୁଜୁଳିଆ ଉଡ଼େ,
ଗାଁଆଁ ପୋଖରୀ
ଥିର ପାଣିରେ
ଜହ୍ନର ଛାଇ ପଡ଼େ ।।୨।।

ଖରା ଫୁଟିଲେ
ଦିବସ ଫିଟେ
ଦୁନିଆଁ ଉଠେ ବସି,
ଲାଗଇ ପୁଣି
ହାଆଉଯାଉ
କୁନିଆଁ ଦିଏ ହସି ।।୩।।

ହସ ଫୁଟିଲେ
ସରାଗ ଫିଟେ
ମନ ଅମେଳ କଥା,
କୁଆଡ଼େ ଯାଏ
ହେଇଲେ ଉଡ଼ି
କଥାରେ ପଡ଼େ ଲଥା ॥୪॥



କଥା ଫୁଟିଲେ
ଗୁମର ଫିଟେ
ରହେନା ମିଛ ଲୁଚି,
ମିଛ ପିଠିରେ
ସବୁରି କାଳେ
ସତଟି ଖେଳେ ପୁଚି ॥୫॥

ସତ ଫୁଟିଲେ
ଆମେ ଫୁଟିବା
ଫିଟିବ ଦେଶ ଛାତି,
ଅମା ଅନ୍ଧାର
ଦୂରେଇ ଯିବ
ଆମେ ଉଠିବା ମାତି ॥୦॥

# ବାଆକୁ ବତା





ବାଆକୁ ବତା,
ବତା ହୁଗୁଳିଲେ ଛିଡ଼ିଲା ଛତା
ଛତାରେ ଅଠର ଖାଡ଼ି,
ଧଅରେ ସନିଆଁ
ଟେଏକେ ପାଲ
ମେଘ ଆଇଲାଣି ମାଡ଼ି ।।୧।।

ତୁଛାକୁ ଏତେ,
ଏତେ ଟିକେ ପାଇଁ ଭାବନା କେତେ
ସତେ କି ଖସିବ ତାରା,
ଯାଆରେ ମକରା
ଶୁଣୁଛୁ କିଆଁ
ହେଇ ପଡିଲାଣି ଖରା ।।୨।।

ବାଜାକୁ ବାଣ,
ବାଣ ଫୁଟୁଥିଲେ ଦୁଲୁକେ ଟିଣ
ହାବେଳୀ ଉବୁକେ ସାଇଁ,
ହେଇରେ ଗୋପାଳ
ଫୁଟିଲା ତୋପ
କାନ ହୋଇଯିବ ଝାଇଁ ।।୩।।





କଥାକୁ ଲଥା,
ଲଥା ଉତୁରିଲେ ଘୂରିଲା ମଥା
ଅସଲ କଥାଟି କିସ,
ହଇରେ ମଦନ
କହିଲୁ କିଆଁ
ଚିଡ଼ିଚିଡ଼ା କଥା ବିଷ ।।୪।।



ଧିନିକିଧିନି,
ଧିନି ଖିଟିଖିଟି ବାଜିଲା ଗିନି
ମାଦଳ ଡାକିଲା ଢାଉଁ,
ବଜାରେ ମଧୁଆ
ତେଲିଙ୍ଗି ବାଜା
ଡାକ ପଡୁ ରାଉଁରାଉଁ ।।୦।।

# ଡରିବି ନାହିଁ ତିଳେ

ପବନ ଶୁଏ
ପାହାଡ କୋଳେ
ବାଦଲ କୋଳେ ପାଣି,
ସୂରୁଜ ଶୁଏ
ଆକାଶ କୋଳେ
ଅଛକି ନାହିଁ ଜାଣି ।।୧।।

ଜଙ୍ଗଲ କୋଳେ
ବାଘ ହରିଣ
ଚଢ଼େଇ ଜାତି ଜାତି,
କେତେ ନା କେତେ.
ଆହୁରି ପଶୁ
ଥାଆନ୍ତି ସୁଖେ ମାତି ।।୨।।



କଙ୍କଡା ଶୁଏ
ବାଲି କୋଳରେ
କେଞ୍ଚୁଆ ମାଟି କୋଳେ,
ହନୁ ମାଙ୍କଡ
କଟାଏ ରାତି
ଆଉଜି ଗଛ ଡାଳେ ।।୩।।

ଭଳି କି ଭଳି
ମାଛ ମଗର
ପାଣି କୋଳରେ ରହି,
ଲଗାଇ ଖେଳ
ଉଠାଇ ରୋଳ
ଦେଖାନ୍ତି କେତେ ଛଇ ॥୪॥



ପାଠ ମୋହର
ବହି କୋଳରେ
ରହିଛି ସିନା ସଦା,
ଥାକ କୋଳରୁ
ତାକୁ ମୁଁ ଆଣି
ସାରି ଦେଲିଣି ଅଧା ॥୫॥

ଯିଏ ଯେଉଁଠି
ରହିଲେ ରହୁ
ପରୁଆ ନାଇଁ ମୋର,
ମାଆ କୋଳ ମୋ
ନରମ ଶେଯ
ତୁଳନା କାଇଁ ତାର ॥୬॥

ମାଆର କୋଳେ ଥିଲେ,
ଆସିଲେ ଆସୁ
ଅନ୍ଧାର ବୁଢ଼ୀ
ଡରିବି ନାଇଁ ତିଳେ ॥୦॥

# ମାରିଲା ଅସୁର ହସି

ପୋଖରୀ ଟିଏ
ପୋଖରୀ ଭିତରେ
ପେଟରା ଟିଏ
ପେଟରା ମଝିରେ ପେଡ଼ି,
ପେଡ଼ିର ଭିତରେ
ସୁନା ଭଅଁର
ସେଇଠି ଅସୁର ନାଡ଼ି ॥୧॥



ପଡ଼ିଆ ଟିଏ
ପଡ଼ିଆ ସେପଟେ
ପାହାଡ଼ ଟିଏ
ପାହାଡ଼ ସେକଡ଼େ ଝର,
ଝରଣା ଦାଢ଼ରେ
ପଥର ଖୋଲ
ସେଇଟା ଅସୁର ଘର ॥୨



ଅସୁର ଟିଏ
ଅସୁର ହାତରେ
ଠେଙ୍ଗୁଣି ଟିଏ
ଠେଙ୍ଗୁଣି ସତର ହାତ,
ପାହାର ପଡ଼ିଲେ
ପଥର ଫାଟେ
ଭୂଇଁରେ ଫିଟେ ଗାତ ॥୩॥

ମଣିଷ ଟିଏ
ନଡ଼ର ବଡ଼ର
ଚତୁର ଟିଏ
ପୋଖରୀ ପାଣିରେ ପଶି,
ପେଟରା ଭିତରୁ
ଭଅଁର କାଢ଼ି
ମାରିଲା ଅସୁର ହସି ॥୪॥





ଚମ୍ ଚମା ଚମ୍,
ଡୁବି ଡାବଲା
ତାଥେଇ ତା
ନୂପୁର ଡାକେ ଛମ୍ ॥୦॥

# କେଉଁଥିରେ ନାହିଁ ଦକା



ପରିବାବାଲା,
ପରିବାବାଲାର
ପଞ୍ଚାଏ ପିଲା
ପିଲାଯାକ୍ ମାଟି ମାରୁ,
ପରିବାବାଲାର
ବଡ଼ ଭାଳେଣି
ଆଳୁ ପାଲଟିଲା ସାରୁ ।।୧।।

ହୋଟେଲବାଲା,
ହୋଟେଲବାଲାର
ଦଙ୍ଗଲେ ପିଲା
ପଟେ ନୁହେଁ କେହି ଭଲ,
ହୋଟେଲବାଲାର
ମନଟି ଊଣା
ଚାହେଁ ଖାଲି ବଲବଲ ।।୨।।

ମାଇକିବାଲା,
ମାଇକିବାଲାର
ମେଞ୍ଚାଏ ପିଲା
ସବୁଯାକ ଗୋଟା ଗଧ,
ମାଇକିବାଲାର
ବଡ଼ ଭାଳେଣି
ସତେ ଧରିଛି କି ଓଧ ।।୩।।

ସେଲୁନ୍‌ବାଲା,
ସେଲୁନ୍‌ବାଲାର
        ଶଗଡ଼େ ପିଲା
ଗୋଟି ଗୋଟି ବିଛୁଆତି,
ସେଲୁନ୍‌ବାଲାର
        ଆମ୍ବିଲା ମୁହଁ
କଷା[illegible]ଡେ ନାଇଁ ରାତି ॥୪॥



ମିଠେଇବାଲା,
ମିଠେଇବାଲାର
        ଗୋଟିଏ ପିଲା
ବଡ଼ ସୁଧାରିଆ ଏକା,
ପାଠ ଯେମିତି କି
        ଖାଠ ସେମିତି
କେଉଁଥିରେ ନାଇଁ ଦକା ॥୫॥



କିତିକିତି ଧାଏଁ ପାଣି,
ମେଘ ମନ କଥା
ପବନ ଜାଣେ
ହାତ ଧରି ନିଏ ଟାଣି ॥୦॥

# ଗଛଲତା

ମାଟି ହେଲେ ନିରିମଳ
ଗାଆଁ ଦିଶେ ସୁନ୍ଦରା
ଗଛଲତା ଛାଇଥିଲେ
ଭୂଇଁରହେ ବତୁରା
ଚାଷହୁଏ ବଢ଼ିଆ,
ଫୁଲେ ଫଳେ ଭରିଯାଏ
ବିଲମାଳ ପଡ଼ିଆ ॥୧॥



ଗଛଲତା କାଟିଦେଲେ
ଭୂଇଁଲାଗେ ଟାଆଁସା
ଗାଆଁ ଦିଶେ ଠାଉଠାଉ
ମାଟି ହୁଏ ପାଉଁଶ।
ପାଣି ପାଇଁ ସକଳେ,
ବଡ଼ ସାନ ପଶୁ ପକ୍ଷୀ
ପାକୁପାକୁ ବିକଳେ ॥୨॥

ଆସ ଭାଇ ଭଉଣୀଏ
ଗଛଲତା ଲଗାଇ
ବଢ଼େଇବା କୁଢ଼େଇବା
ଗାଆଁଲୋକ ଜଗାଇ
ମାଟି ହବ ସରସା,
ଗଛମାନେ ଖୁସିହେଲେ
ମେଘ ଦବ ବରଷା ॥୩॥



ମେଘ ଯେବେ ବରଷିବ
ଫୁଲ ଫଳ ଲୋଟିବ
ଦେଶ ସାରା ସବୁଆଡେ
ମିଠା ହସ ଫୁଟିବ
ଗଛ ଆମ ସମ୍ପଦ,
ଗଛ ଯହିଁ ନାହିଁ ତହିଁ
ମାଡ଼ି ଆସେ ବିପଦ ॥୦॥

# ଶୁଣ୍ ଶୁଣ୍ କଥା

ଝଡ଼ ଦୋଡ଼
ଲଙ୍ଗଳ ବୁଲା
ଟାଡ଼୍ ଟାଡ଼୍ ମାଟି,
ଜମି ହୋଇବ
ଫସଫସିଆ
ଖୁସିରେ ଯିବୁ ଫାଟି ॥୧॥

କୋଡ଼େ ମାଟି
ସିଆର କାଟି
ବୁଣ୍ ବୁଣ୍ ମଞ୍ଜି,
ଉଠିବ ଗଜା
ପତ୍ର ମେଲି
ଚାଷରେ ଯିବୁ ମଜି ॥୨॥



ଗଛ ହୋଇଲେ
ପାଆ ବହଳ
ଗଡ଼୍ ଗଡ଼୍ ହିଡ଼,
ଗଛ ମୂଳକୁ
ଖୁସେଇ ଦେଇ,
ବାଡରେ ଲଗା ଭିଡ଼ ॥୩॥

ଗୋବର ଖତ
ମୂଳରେ ଦେଇ
ଢାଳ୍ ଢାଳ୍ ପାଣି,
ହଟେଇ ଦିଏ
ଅଜଣା ଲଟି
ଅରମା ଦିଏ ହାଣି ॥୪॥

ଅଉଲ୍ ମାର୍କା
ଫସଲ ହେବ
ଶୁଣ୍ ଶୁଣ୍ କଥା,
ଚାଷ କାମରେ
ହୁଡିଲେ ବାବୁ
ଆଉଁସୁଥିବୁ ମଥା ॥୦॥

# ଟାଲି ବନମାଳି





ଟାକ୍‌ଟାକ୍ ଟା...ଳି,
ଟାଳି ବନମା...ଳି,
ଭାତ ଫୁଟେ ଲକ୍ ଲାକ୍
ପେଜ ଦିଅ ଗା...ଳି ॥୧॥



ଟାକ୍‌ଟାକ୍ ଟା...ଳି,
ଦାଦା ଦେଲେ ଗା...ଳି,
ମାଛ ଡିଏଁ ଫକ୍ ଫାକ୍
ଖୁଡୀ ବସେ ଭା...ଳି ॥୨॥



ଟାକ୍‌ଟାକ୍ ଟା...ଳି,
ଆଜି ହାଟ ପା...ଳି,
ତରା ଫୁଟେ ଚକ୍ ଚାକ୍
ଜହ୍ନ ଦିଶେ ଫା...ଳି ॥୩॥





୨-୯



ଟାକ୍‌ଟାକ୍ ଟା...ଳି,
ଦିଅ ଦୀପ ଜା...ଳି,
କଳା ମେଘ ଧମ୍ ଧାମ୍
ପାଣିଦିଏ ଢ଼ା...ଳି ।।୪।।

ଟାକ୍‌ଟାକ୍ ଟା...ଳି,
ମେଘ ଦିଏ ଢ଼ା...ଳି,
କୋଳି ପଡେ ଟପ୍ ଟାପ୍
ଆଣ ବେଗେ ଥା...ଳି ।।୫।।



ଟାକ୍‌ଟାକ୍ ଟା...ଳି,
ଭାଲୁ ବସେ ଭା...ଳି,
ନିଆଁ ଉଠେ ଧପ୍ ଧାପ୍
କିଏ ଦିଏ ଜା...ଳି ।।୬।।

ଟାକ୍‌ଟାକ୍ ଟା...ଳି,
ତାଳି ବନମା...ଳି;
ତାଳି ବନମା...ଳି ।।୦।।



# ଗୋଟେ ବାଡ଼ର ବତା

ଛତା ଫିଟିଲେ
ଛାଇ ତରାସେ
ନଈ ଫିଟିଲେ ଘାଇ,
ମନ ଫିଟିଲେ
ଉତୁରେ କଥା
ମୁଗ ଫିଟିଲେ ଜାଇ ।।୧।।



ଗଛ କାଟିଲେ
ବରଷା ଲୁଚେ
କଥା କାଟିଲେ କଳି,
ଭୂଇଁ କାଟିଲେ
ପୋଖରୀ ଠିଆ
ମନ କାଟିଲେ ଗାଳି ।।୨।।



ମେଘ ହଟିଲେ
ଅଜାଡ଼େ ଖରା
ରାତି ହଟିଲେ ଦିନ,
ଦୁଃଖ ହଟିଲେ
ଉକୁଟେ ହସ
ସୁଖ ହଟିଲେ ହୀନ ।।୩।।



ଜହ୍ନ ଉଠିଲେ
          ଜୋଛନା ଝରେ
ମାଟି ଉଠିଲେ ଗାଡ଼,
ଗଛ ଉଠିଲେ
          ଶୀତଳ ଭୂଇଁ
ହାତ ଉଠିଲେ ମାଡ଼ ।।୪।।

ମିଛ ରଟିଲେ
          ଉଜୁଡ଼େ ଘର
ସତ ରଟିଲେ ହିତ,
ନାମ ରଟିଲେ
          ଭକତି ବଢ଼େ
ଭାବ ରଟିଲେ ଗୀତ ।।୫।।



ଫିଟି ଯାଉକି
          ଚହଟି ଯାଉ
ହଟି ଯାଉକି
          ଶୁକୁଟି ଯାଉ
ରଟରେ ସେଇ କଥା,
ଆମେ ସଭିଏଁ
          ଭାଇ ଭଉଣୀ
ଗୋଟେ ବାଡ଼ର ବତା ।।୦।।

# ପଶୁପକ୍ଷୀ ଉଠିଲେ



କାଚ ରଙ୍ଗ ପୋଖରୀରେ
        କାଠ ରଙ୍ଗ ପଥର,
ଟିଣ ରଙ୍ଗ ମାଛମାନେ
        ମାରୁଥିଲେ ଚକ୍କର,
ଓଧ ଯହୁଁ ଆଇଲା,
ଲୁଚିଗଲେ ମାଛମାନେ
        ମୁହଁ କରି କାଇଲା ।।୧।।





ପିତ୍ତୁ ରଙ୍ଗ ବାଦଲରେ
        ଚୂନ ରଙ୍ଗ ବିଜୁଳି,
ଘାସ ରଙ୍ଗ ଶୁଆମାନେ
        ଖାଉଥିଲେ ପିଜୁଳି,
ଆସିଗଲା ବତାସ,
ଶୁଆମାନେ ଉଡ଼ିଗଲେ
        ଶାରୀମାନେ ହତାସ ।।୨।।



ଭାଲୁ ରଙ୍ଗ ଅନ୍ଧାରରେ
ହାତୀ ରଙ୍ଗ ପଡ଼ିଆ,
ମାଟିରଙ୍ଗ ମୂଷାମାନେ
ଖାଉଥିଲେ ନଡ଼ିଆ,
ଅଜଗର ଅଇଲା,
ବଡ଼ ପେଟୁ ମୂଷାଟାକୁ
ବେକଆଡୁ ଧଇଲା ।।୩।।

ଛେନା ରଙ୍ଗ ସକାଳରେ
ଦହି ରଙ୍ଗ ଆଲୋକ,
କ୍ଷୀର ରଙ୍ଗ ଫୁଲମାନେ
ବଜେଇଲେ ଢୋଲକ,
ପଶୁ ପକ୍ଷୀ ଉଠିଲେ,
ନାନା ଜାତି ଫୁଲମାନେ
ଟୁପୁ ଟାପୁ ଫୁଟିଲେ ।।୪।।





କିଚିରି ମିଚିରି ଗୀତ;
ଖରା ଆସିଲାଣି
ଉହ୍ଲେଇ ଧରି
ହେଇ ପଳେଉଚି ଶୀତ ।।୦।।

# ଦମ୍ ଦମ୍ ଦମକ



ଦମ୍ ଦମ୍ ଦମକ
ଟମ୍ ଟମ୍ ଟମକ
ଦମ୍ ଦମ୍ ଗୁଳି ଫୁଟେ
ଟମ୍ ଟମ୍ ଗାଡିରୁ
ଥମ୍ ଥମ୍ ଜଳି ଉଠେ
କାହା ଆଖି ଭାଡ଼ିରୁ ।।୧।।

ଟକ୍ ଟକ୍ ଟାକରା
ଠକ୍ ଠକ୍ ଠାକରା
ଟକ୍ ଟକ୍ ଛିଡେ କିସ
ଠକ୍ ଠକ୍ ମାଡ଼ରେ
ଧକ୍ ଧକ୍ ପଡ଼େ ଛାତି
ନିଆଁ ଲାଗେ ହାଡ଼ରେ ।।୨।।



ଖଡ୍ ଖଡ୍ ଖଡ଼ର
ଘଡ୍ ଘଡ୍ ଘଡ଼ର
ଖଡ୍ ଖଡ୍ ରଡ଼ି କରି
ଘଡ୍ ଘଡ୍ ମଟର
ଭସ୍ ଭସ୍ ଧୁଆଁ ଛାଡ଼େ
ଆମେ ଛଟପଟର ।।୩।।



ଠପ୍ ଠପ୍ ଠପର
ଟପ୍ ଟପ୍ ଟପର
ଠପ୍ ଠପ୍ ପାଣି ଟୋପା
ଟପ୍ ଟପ୍ କାକର
ସଢ୍ ସଢ୍ ମଜାଲାଗେ
ମିଠା ଖଟା ସାକର ।।୪।।

ଲାଲ୍ ଲାଲ୍ ଭାତ,
ଦିନଦିପହରେ
ଝିଙ୍କାରି ଡାକେ
ବିଲୁଆ ଖୋଳୁଛି ଗାତ ।।୦।।

# ଅସନା ନା ଫସନା

ନାଆଁ ସିନା ଗୋବର
କାମ ମୋର ଜବର
କେତେ କାମ କରେ ମୁହିଁ
ରଖିଚ କି ଖବର ।।୧।।



ମତେ ଲେପି ଭୂଇଁରେ
ହେଜିଚ କି ଚାହିଁରେ
ମାଟି ଦିଶେ ନିରିମଳ
ମୋ ପରି କେ କାହିଁରେ ।।୨।।



ଖତ କରି ଖୁସେଇ
କ୍ଷେତେ ଦେଲେ ମିଶେଇ
ଚେଇଁ ଉଠେ ଫୁଲ ଫଳ
ଜଗତକୁ ହସେଇ ।।୩।।

ମତେ ଦଳି ଶୁଖେଇ
ଦେଲେ ଘସି ପକାଇ
ଜାଳେଣିର କାମ କରେ
ଜଳେ ଦିକି ଦିକେଇ ।।୪।।

ମତେ ରଖି ଭାଟିରେ
ଦିଅ ଯେବେ ଘୋଟିରେ
ଦିଏ ମୁହିଁ ବାଓ ଗ୍ୟାସ୍
ବାଷ୍ପ ଆସେ ଉଠିରେ ।।୫।।





ସେଇ ବାଷ୍ପ ବଳରେ
ଚାଲେ କେତେ କଳରେ
ଜଳେ ବତୀ ଜଳେ ଚୁଲା
ବିଜ୍ଞାନର ଖେଳରେ ।।୬।।

ତସୁ କୁଣ୍ଡା ରୁଣ୍ଡେଇ
ମୋର ଦେହେ ମେଣ୍ଡେଇ
କାରିଗର ଗଢ଼ିଦିଏ
ହାତୀ ଘୋଡ଼ା କଣ୍ଢେଇ ।।୭।।





କୁହ ମତେ ଅସନା
ପାଖେ ସିନା ପଶନା
ଉପକାରୀ ସାଥୀ ମୁହିଁ
ଅସନା ନା ଫସନା ।।୦।।

ଦାଶ ବେନହୁର, ଓଡ଼ିଆ ଶିଶୁ ସାହିତ୍ୟ ଜଗତରେ ଜଣେ ଯଶସ୍ୱୀ ସ୍ରଷ୍ଟା । ସାହିତ୍ୟର ବିଭିନ୍ନ ବିଭାଗରେ କଲମ ଚାଳନା କରିଥିବା ଏହି ଲେଖକ, ଶିଶୁଗୀତ ରଚନା କ୍ଷେତ୍ରରେ ମୌଳିକତା ଓ ନୂଆ ଧାରା ସୃଷ୍ଟି କରି ବେଶ୍ ପାଠକୀୟ ଆଦର ଲାଭ କରିଛନ୍ତି । ଶିଶୁ ସାହିତ୍ୟ ରଚନା ସକାଶେ ଓଡ଼ିଶା ସାହିତ୍ୟ ଏକାଡେମୀ, ଓଡ଼ିଶା ବିଜ୍ଞାନ ଏକାଡେମୀ, ରାଷ୍ଟ୍ରୀୟ ଶୈକ୍ଷିକ ଅନୁସନ୍ଧାନ ଓ ପ୍ରଶିକ୍ଷଣ ପରିଷଦ, ଭାରତୀୟ ଜାତୀୟ ସଂଗଠନ, ସାହିତ୍ୟ ଭୂଷଣ ଉଦୟନାଥ ଷଡ଼ଙ୍ଗୀ ସ୍ମୃତି ପୁରସ୍କାର, ପଣ୍ଡିତ ଉପେନ୍ଦ୍ର ତ୍ରିପାଠୀ ଶିଶୁ ସାହିତ୍ୟ ପୁରସ୍କାର ଓ ଝୁମୁକା ପୁରସ୍କାର ଆଦିରେ ସେ ସମ୍ମାନିତ । ବର୍ତ୍ତମାନ ସୁଦ୍ଧା ତାଙ୍କର ୩୦ ଖଣ୍ଡରୁ ଉର୍ଦ୍ଧ୍ୱ ଶିଶୁ ସାହିତ୍ୟ ପୁସ୍ତକ ପ୍ରକାଶିତ । ଶିଶୁ ମନରେ ଆନନ୍ଦ ଓ ଆଲୋକ ବୁଣିବାରେ ଶ୍ରୀ ଦାଶ ବେନହୁରଙ୍କର ପାରଦର୍ଶିତା ଅତ୍ୟନ୍ତ ପ୍ରଶଂସନୀୟ ।

ପ୍ରକାଶକ